# ମୋ କବିତା ଛୁଅଁନାହିଁ



ମିଥ୍ୟାବାଦ ପ୍ରମାଣିତ ହେଲେ
ଯେଉଁମାନଙ୍କ ଚକ୍ଷୁରେ
କିମ୍ବା ସେମାନଙ୍କ ବନ୍ଧୁମାନଙ୍କ ଚକ୍ଷୁରେ
ଲଜ୍ଜା ଫୁଟି ଉଠେ ନାହିଁ ;
ତମେ କେମିତି ସେମାନଙ୍କ ସହ
ପ୍ରତିଯୋଗିତାରେ ପାରି ଉଠିବ ?

ମେନ୍ସିୟସ୍

ଅଧ୍ୟାପକ ଭଗବତ୍ ପ୍ରସାଦ ରଥ

ପ୍ରକାଶକ :

ୟୁନାଇଟେଡ ଆର୍ଟିଷ୍ଟସ ଏସୋସିଏସନ

ଗଞ୍ଜାମ, ଜିଲ୍ଲା : ଗଞ୍ଜାମ

ପ୍ରଥମ ମୁଦ୍ରଣ :

ଜାନୁୟାରୀ ଉଣିଶ ଛୟାଅଶୀ

ମୁଦ୍ରକ :

ଜ୍ଞାନପ୍ରକାଶିନୀ

ଆର୍. କେ. ହୋଷ୍ଟେଲ ରୋଡ୍, ବ୍ରହ୍ମପୁର

ମୂଲ୍ୟ—ଟ ୫-୦୦

---

## ଲେଖକଙ୍କର ଲିଖିତ ଅନ୍ୟାନ୍ୟ ପୁସ୍ତକ

ମୋ ଦେଶ ନୁହେଁ ଭୁବନେଶ୍ୱର (କବିତା)

ରଂଜିତ ଅସିଧାରେ (ଐତିହାସିକ ଉପନ୍ୟାସ)

ସଂଘଂ ଶରଣଂ ଗଚ୍ଛାମି (ଐତିହାସିକ ଉପନ୍ୟାସ)

## ଉଦ୍‌ଗୀରଣ

କୁମାରୀ ଧର୍ଷଣର ତାଲାଗଣ ଗୁଡ଼ୁଥିବା ନେତାର ପୃଷ୍ଠପୋଷକଙ୍କ
ସାହିତ୍ୟିକ ଗୋଷ୍ଠି ନର୍କକୁ ଯାଆନ୍ତୁ ।

ଫକୀର ମୋହନ, ଗୋପୀନାଥ, ଶାନ୍ତନୁ, ସୁରେନ୍ଦ୍ର ଗଦ୍ୟ ସାହିତ୍ୟର
ବଳିଷ୍ଠ ସମାଜ ସଚେତନତା କବିତା ରାଜ୍ୟରେ ହରିଜନ ନ ରହୁ ।

ଏଣ୍ଟି-ଏଷ୍ଟାବ୍ଲିସ୍‌ମେଣ୍ଟ ବ୍ୟକ୍ତିତ୍ୱ ରକ୍ଷା ପାଇଁ ଯେଉଁ ବିଶ୍ୱ ସାହିତ୍ୟିକମାନେ
ଜୀବନ କ୍ଷେତ୍ରରେ ଅନବରତ ଝଡ ଝଂକାର ସମ୍ମୁଖୀନ
ସେଇମାନଙ୍କର କବଚ କୁଣ୍ଡଳ ମାଗି ଏ ଦେଶର ସାହିତ୍ୟିକ
ଆଜି ଦରବାରରେ ସ୍ତୁତିରତ

ପ୍ରଗତିର ରଥରେ ବିଶ୍ୱବିଜୟ କରିବାକୁ ବାହାରିଥିବା ଅର୍ଥ ଓ
କ୍ଷମତାକୁ ବିରୋଧ କରି ଯେଉଁମାନେ ବେକଟିକୁ ସଙ୍କଟଯୁକ୍ତ କରିଛନ୍ତି,
ସେମାନଙ୍କର ଜୟ ହେଉ ।

ୟେଟସ୍, ଅଡେନ୍, ନେରୁଦା, ମିଲଟ୍, ଫ୍ରୋଷ୍ଟଙ୍କ ମାନବଗନ୍ଧୀ
କବିତାର ପ୍ରସୂତିଶାଳା ଏ ମାଟି ହେଉ ।

# ମୋ କବିତା ଛୁଅଁ ନାହିଁ

ମୋ କବିତା ଛୁଅଁ ନାହିଁ
ରଜନୀଗନ୍ଧ ଛୁଆଁ ହୋଇଯିବ
ନେତାମାନେ ନଆଁ ପାଣି ବାସନ୍ଦ କରିବେ ।

'ଇଭ୍'ର ଦେହକୁ ନେଇ
ମୁଁ ଖେଳି ପାରୁନି
ମଣିମାଙ୍କ ମଣୋହର
ଗାଉଁଲି ଝିଅଟିର ଲୁହ
ମୋ କଲମରେ ଲେଖି ଯାଉଚି ।

ମୋ କବିତା ବଡ଼ ବଡ଼ ପତ୍ରିକାରେ
ଛପା ହୁଏ ନାହିଁ
କଙ୍କଣ, କୁଣ୍ଡଳଧାରୀଙ୍କ ସହିତ
ମୋର କଟି ।

ବୋକା ବୋକା ଲୋକଙ୍କ ସାଥିରେ
ମୈଦାନ୍‌ରେ ମୁଁ ଠିଆ ହୋଇଚି
ବନ୍ଧୁକ ଆଗରେ
ମୋ କବିତା ଦେହରେ
ରକ୍ତର କଡ଼ା ଗନ୍ଧ ।

## ବାଇଡ଼ଙ୍କ ଓ ବନ୍ଧୁଅତ

ଭଟର ମଣିଷଟିଏ ଥିଲା
ଏବେ ନେତାଟିଏ ହୋଇଯାଇଛି ।

କଣ୍ଟ୍ରାକ୍ଟରମାନେ ମଦଚ୍ୟାପ୍ ବସାଇଚନ୍ତି
ନହୁଲ କପୁଧୀମାନେ ପସରା ମେଲା ଦେଇଚନ୍ତି ।

ଦିନେ ସେ ମଣିଷଟିଏ ଥିଲା
ଆମ୍ଭକୁ ଆମ୍ଭଡ଼ା କହୁ ନ ଥିଲା
ଏବେ ତା'ପାଇଁ ସତ ଆଉ ମିଛ
ହାଇ କମାଣ୍ଡ ଠିକ୍ କରୁଚନ୍ତି ।

ତା'କୁ ପ୍ରଶଂସାର ଶୋଥ ହୋଇ ଯାଇଚି
ସେ ମଧୁ ଚନ୍ଦିରେ ଆରାମ କରୁଚି
ଆମେ କାହାରେ ଭୋ ଭୋ ଭୁକୁଚୁ ।

ଲୋକେ ପୋକମାଛି ଭଳି ନିଃସହାୟ ହୋଇ ଯାଇଛନ୍ତି
ଗୋଟିଏ ଦେଶକୁ ଜାଦୁଅରେ ଫିଙ୍ଗି ଦିଆ ଯାଇଛି
ଗୋଟିଏ ଭବିଷ୍ୟତକୁ ବୁବୁକରେ ରକ୍ତାକ୍ତ କରାଯାଇଛି ।

ଆମେ ତା'ର ଖାନ୍‌ସାମାକୁ ହରଦମ୍ ସଲାମ୍ ଦେଉଚୁ
କାରଣ କେବଳ ସେଇ ଗୋଟିଏ କଥା
ଆମେ ଘରେ ଓ ସ୍କୁଲ୍ କଲେଜରେ ଶିଖିଚୁ ।

## ନେତା ଉବାଚ

ଯୋଉ ଘାଟି ବୁର୍ଜରେ ଲଢ଼ିଗଲ
ସେ ଆଜି କା'ର ପୁଅ
ଯେଉଁ ଝିଅଟିକୁ ମନ୍ତ୍ରୀ ବୃନ୍ତଚ୍ୟୁତ କଲ
ସେ ଆଜି କା'ର ଝିଅ ।

ପାଦପୀଠରେ ଯୋଉଁ ନାଆଁ ଜଳିଲା,
ତା ଧାସ ତମକୁ ବାଜନ
ବନ୍ୟା ଯୋଉ ବୁଢ଼ୀକୁ ଭସାଇ ନେଲା
ସେ ତମ ମାଆ ନୁହେ ।

ଆସ ! ମୋ ପତାକା ଧର
ଟେଲିଭିଜନ୍, ଫ୍ରିଜ୍, କାର୍ ସବୁ ପାଇବ ।

ଆଲେକ୍‌ଜାଣ୍ଡରକୁ ରାସ୍ତା ମୁଁ ଦେଖାଇଥିଲି
ମହମ୍ମଦ ଘୋରୀର ଖଣ୍ଡା ମୁଁ ପଜାଇଥିଲି
କ୍ଲାଇବ୍ ମୋ ପିଠିକୁ ଆଉଁସି ଦେଇଥିଲା
ବକ୍‌ସି ଜଗବନ୍ଧୁର ପାଗ ମୁଁ ଖସାଇ ଦେଇଥିଲି ।

ଇତିହାସ ସାରା କେବଳ ମୋର ପାଦଚିହ୍ନ
ଭୂଗୋଳଯାକ ମୁଁ ଟାଣିଥିବା ଲାଲ ଲାଲ ଗାର
ଛୁଆଳମାନଙ୍କୁ କହୁଛି ଡାଳଚଷ ଧରାଇ ଦେବା
ସିଂହାସନ ଆମର ହୋଇଯିବ ।

ବୁଦ୍ଧିଜୀବୀର ସତ୍ୟପାଠ

ଗଜମାନ୍ତ ଠିକା କେବଳ ଆପଣ ନେଇଚନ୍ତି
ଆଖି ଛୁଇଁଚ
ଆମେ ଭଲ ଲୋକମାନେ
'ସୀତା ହରଣ' ବେଳେ ମୁହଁ ବୁଲାଇଦବୁ ।

ହଜାରେ ବର୍ଷର ଇତିହାସ ସବୁ
ଆମକୁ 'ଚୁ' 'ଚୁ' ଡାକ ହାଡ଼ ଖଣ୍ଡେ ଫିଙ୍ଗି ଦିଏ
କଣ ହୋଇଗଲା
ମରିଚ ଯାଇନୁ ।

ଆପଣଙ୍କ ପାଣ୍ଡୋଇ ଶୀତଳ ଥାଉ
ମୂର୍ଖମାନେ ପ୍ରବାହରେ ଜଳ ଜଳ ଘୂର୍ଣ୍ଣିଁଥାନ୍ତୁ
ଆଖି ବୁଜିଦେଲେ
ଢିପ ଖାଲ ସବୁ ସମାନ ।

ଟେପଟେପିଆ ଝିଅଟାକୁ ଉଠେଇ ନଅନ୍ତୁ, ସାର୍
ଆମେ ହଲ୍‌ଚଲ୍ କରି ସମ୍ବାଦପତ୍ରକୁ ଲେଖିବୁ
ଝିଅଟା କଞ୍ଚା ଆଇଁଷିଆ ।

ଆପଣଙ୍କୁ ହଜାର ହଜାର ଜୁହାର ହଜୁର
କ୍ଲାଇବ୍ ମାଟ୍ରିକ୍ ଦେଇଁ ନ ଥିଲା
ଆପଣ ଏମେ ।

ଆପଣଙ୍କ ଗୁହମୁତ ଖାଇଚ୍
କରୁ ଅଇଁଠା ଖଲ ହୁକୁମ ହଜୁ ।

# ଉନ୍ନୟନ

ଆମେ ସବୁ ନମ୍ବ ପୋତୁଛୁ
ଆଉ ପିଲଙ୍କୁ କହୁଛୁ
ସେମାନେ ଆମ୍ବ ଖାଇବେ ।

ମଙ୍ଗଗ୍ରହ ପାଖରେ ହାତ ମଳ ଠିଆ ହୋଇଛୁ
ଆଜ ଭଷଣ ଦଉଛୁ
ଶାଗୁଆ ଭଗିଆ ଭୂକ ବଢ଼ିବ ।

ପୂର୍ବକୁ ଯାଉଛ ବୋଲି ଘୋଷଣା କର
ଆମେ ଯଦ ପଶ୍ଚିମରେ ପହଞ୍ଚିଯାଉ
ପରୱା ନାହିଁ ।

ପାଟି ଓ କଲମକୁ ଏଣ୍ଡ୍ରନ୍ ଦଆ ସରଚ
ଭବଷ୍ୟତର ବଗିଚ୍ଚରେ
ନଆଁ ଲଗାଇଦେଲେ
କେହ କଛୁ କହବେ ନାଇଁ ।

# ଅତୀତ ଓ ବର୍ତ୍ତମାନ

ସେମାନେ ସମସ୍ତେ ଭଲ ବାପା, ଭଲ ମାଆ ଥିଲେ
ପୁଅଙ୍କୁ ପାଠ ପଢ଼ାଉଥିଲେ
ଝିଅଙ୍କୁ ବର ଯୋଗାଉଥିଲେ
ବ୍ୟାଙ୍କରେ ଟଙ୍କା ବଢ଼ାଉଥିଲେ ।

ଦିଲ୍ଲୀରେ ଯେତେବେଳେ ଡ୍ରାଗନ୍ ମାଡିଲା
ଭୁବନେଶ୍ୱରରେ ସାପ ଫୁ'ଫୁ' କଲା
ସେମାନେ ଚୁପ୍‌ଚାପ୍
ନିଜ କାମରେ ମନ ଦେଇଥିଲେ ।

ବଡ଼ପୁଅ କାଲି କହିଗଲା
'ରାମ ଲାଲ୍‌ଙ୍କ ବାହୁଙ୍ଗା ପୁଅ
ଦଶ ହଜାରରେ ବୂକସ୍ତ ମାରିନେଲା
ସୁନା ପଦକକୁ
ମୁଁ ଏଥର ଧକାଂଦେବ' ।

ଝିଅ କାନ୍ଦି କାନ୍ଦି ମା'କୁ କହିଲା
'ମଦ ବେପାରୀର
ଷଣ୍ଢ ମାର୍କା ପୁଅ କହୁ ଯାଇଛି
ତା'କୁ ବଙ୍ଗଳାରେ ଦେଖା ନ କଲେ
ବଦଳି ହେବ କୋରାପୁଟ୍‌କୁ' ।

ଡାକ୍ତର କହୁଚନ୍ତି, 'ଭେଜାଲ୍ ତେଲ ଖାଇ
ପ୍ରମିଳାର କ୍ୟାନ୍‌ସର ହେଲା' ।

ଭଲ ଲୋକମାନେ ଭାବୁଚନ୍ତି
କେଉଁ ଛକରେ ସେମାନେ ରାସ୍ତା ଭୁଲିଗଲେ ।

## ମଧ୍ୟାହ୍ନର ଅନ୍ଧକାର

ଯେତେବେଳେ ପିତା ଭଗବାନ
ଅବତାର ନେବେ ବୋଲି
ଚୁକ୍ତି ସ୍ୱାକ୍ଷର କରିଥିଲେ
(ଗୀତା ତ ସେୟା କହେ)
ଏବେ ବିଚରା ବହୁତ ପସ୍ତଉଛନ୍ତି ।

ଭଗବାନଙ୍କ ଅବତାର ଫାଇଲ୍
ଏବେ ବ୍ରହ୍ମାଙ୍କ ଅଫିସ୍‌ରେ
ନିଖୋଜ କରିଯାଇଛି ।

ଭଗବାନ ଜାଣିଲେଣି
ଅର୍‌ୱେଲର ଉଣିଶିଶ ଚଉରାଅଶୀରେ
ଖବରକାଗଜ ସମ୍ପାଦକ ଓ ରିପୋର୍ଟର୍‌ମାନେ
ଭଗବାନଙ୍କୁ ମଧ୍ୟ ସଇତାନ କରିଦେବେ ।

ବିଶେଷତଃ ରେଡ଼ିଓ, ଟେଲିଭିଜନ, ସମ୍ବାଦପତ୍ରକୁ
ବେସରକାରୀ ଭଗବାନଙ୍କ ବହୁତ ଡର ।

ଥରେ
ହିଟଲର୍ ତମକୁ ଯୁଙ୍ଗ ରୁମ୍‌କୁ ଡାକି ପଠାଇଥିଲା
ଆଜି ତମେ ବ୍ରେଖଟ୍, ମ୍ୟାନ୍ ହାତରେ ସ୍ୱପୁଡ଼ା ପଠାଇଥିଲ ।

ପୁଣି ଯେଉଁଦିନ
ଇହୁଦୀଙ୍କ ରକ୍ତ ସିନ୍ ନଦୀରେ ଧୋଇସାରି
ଏଇଫେଲ୍ ଟାୱାର୍ ଚୂଡ଼ାରେ
ନାଜୀନେତା ତମ ଆଡ଼େ ହାତ ବଢ଼ାଇଥିଲେ
ବାରୁଦର ଗନ୍ଧ ତାଙ୍କୁ ଚମକାଇ ଦେଇଥିଲା
କାମ୍ୟୁ, ସତେ ଘରେ ତମେ ବୋମା
ତିଆରି କରୁଥିଲ କନା ?

ଫାଷ୍ଟ୍, ମିଲର୍‌ଙ୍କ ମାର୍କସ୍ ଗନ୍ଧ ଶୁଙ୍ଘି ଶୁଙ୍ଘି
ସି. ଆଇ. ଏ. ର ବ୍ଲଡ୍‌ହାଉଣ୍ଡମାନେ
ଓ୍ୱାସିଂଟନ୍‌ର ଓସାରିଆ ରାସ୍ତା ଉପରେ
ପ୍ରାଣମୂର୍ଚ୍ଛା ଧାଉଁଥିଲେ ବେଳେ
ତମ ଆଖିରେ ଉଜ୍ଜଳ ଝଲସି ଉଠିଥିଲା ।

ସୋଲଜେନିତ୍‌ସିନ୍, ପାସ୍ତରନାକ୍ ହାତରେ
ଲଲବାନ୍ଧିମାର ମାଲିକ ପାଖକୁ
'ଯୁଦ୍ଧଂ ଦେହି'ର ଡାକରା ଯେ ପଠାଇଥିଲ
ସେ ତମେ ନା ?

ତମ ସଙ୍ଗ ପାଇଁ ବ୍ୟାକୁଳ ଶକ୍ତିଧରମାନେ
ବାରମ୍ବାର ନିଷ୍ଫଳ କ୍ରୋଧରେ
ତମ ଇଜ୍ଜତ-ଜଗୁଆଳଙ୍କ ବୁକୁ ନିଗିଡ଼ା ରକ୍ତ ର
ଇତିହାସର ରାଜପଥକୁ ଓସଡ଼ା କରି ପକାଇଚନ୍ତି ।

ଓଡ଼ିଶା ମାଟି କ ଅପରାଧ କରିଥିଲ
ଏଠି ତମେ ଅରୁଣ ନୟନ ସନ୍ତାନମାନେ
ପାଟଯୋଡ଼ ପିନ୍ଧ, କୁଣ୍ଡଳ ହଲାଇ
ସର୍କାରି କୋଠାରୁ ବାହାର ଆସୁଚନ୍ତି ।

ମୋର ଦେଶବାସୀ
ଭାଇବନ୍ଧୁ, ପରଜନ
ଚୁପ୍‌ଚୁପ୍ ଶୋଇଛନ୍ତି
ବାଘ ମାଡ଼ିଚି ଦିଲ୍ଲୀ ଭୁବନେଶ୍ୱରରେ ।

ମେଞ୍ଚାମେଞ୍ଚା ଲମ୍ବା ବାଳ
ଚକଡ଼ା ଚକଡ଼ା ରକ୍ତ ।

ବାଘ ଗର୍ଜୁଚି ମାଇକ୍ ପଛରେ
ବାଘ ଶୋଇଚି ଡାକ ବଙ୍ଗଳାରେ ।

ଏକଚକ୍ରା ଶୁନ୍‌ଶାନ୍
ବ୍ରାହ୍ମଣ ଘରେ ବାଘ ବୋବାଳି
ପାଣ୍ଡବମାନେ ନିଖୋଜ ।

ପୁଚଲିବାଣ୍ଡିର ପାଗଳା ପୁଅ କହୁଥିଲ ନା
'ବାଘ ଆସୁଛି'
ଆମେ ତ ନିଶା ଖାଇଥିଲୁ
ଆମ ପାଦ ଏବେ ବି ଟଳମଳ ।

## ସଂଶୟ

ଇତିହାସ ଭିତରେ
ବେଳେ ବେଳେ ମୋର ସନ୍ଦେହ ହୁଏ
ସତେ କ'ଣ ଏ ଦେଶର ଲୋକେ ଦିନେ
ନ୍ୟାୟକୁ ପସନ୍ଦ କରୁଥିଲେ
ସତ୍ୟକୁ ସମ୍ମାନ ଦେଉଥିଲେ ।

ହେତୁ ହେଲା ଦିନୁ ମୁଁ ଦେଖି ଆସିଛି
'ମିଥ୍ୟା'ର ସିଂହାସନାରୋହଣ
'ଅର୍ଥ'ର ଚତୁର୍ପାର୍ଶ୍ୱରେ
ଭିଖାରୀ ଜନତାର ଭିଡ଼ ।

ଘାସ ଭଳି କୋମଳ ଶିଶୁର
ଅଙ୍ଗସାରା ବ୍ଲୁକ୍ ଚିହ୍ନ
ଅତ୍ୟାଚାରର ଦଂଶନରେ
ନୀଳ ନୀଳ ଜାତି ଓ ସମ୍ପ୍ରଦାୟ ।

ଚତୁର ପାଠୁଆ ଲୋକଙ୍କ
ବୁଦ୍ଧିର ବେଶ୍ୟାଚରଣ,
ଆଜି ଅବୋଧ, ଭଲ ଲୋକଙ୍କ
ନିର୍ଲଜ୍ଜ ନୀରବତା ।

ଏଠି କେବଳ କଥାର ବଜାରରେ
ଦୋକାନ ଖୋଲିବା ଲାଭଜନକ ।

## ବିସ୍ମୃତ ସ୍ମୃତି

ସନ୍ଧ୍ୟାର ନରମରଙ୍ଗକୁ ଗାଲରେ ବୋଳି
ତମେ ଯେତେବେଳେ ପ୍ରଶ୍ନକଲ
'ମତେ ଚିହ୍ନି ପାରୁଚ' ?

ସମ୍ପୁନଂସାତ ସିନ୍ଦୂକ ଖୋଲି
ମୁଁ ଖୋଜିଲି ମୋର ତାରୁଣ୍ୟର ପକ୍ଷୀଟିକୁ
ଆମ ପାଖରେ ଏକ ସ୍ୱର୍ଣ୍ଣି ଆଶା ଭଳି
ଭଗ୍ନଜାନୁ କୋଣାର୍କ ଠିଆ ହୋଇଥିଲ
ହଜି ଯାଇଥିବା ଶେଫାଳୀର ମଧୁର ଗନ୍ଧଭଳି
ତମେ ଅନ୍ଧାରର ପାହାଚ ପାହାଚ ଓହ୍ଲାଇ ଗଲ ।

ସେ ଦିନୁ ତମକୁ କେତେ ଖୋଜିଚି
ଆଜି ଦାଢ଼ିସାରା ଧୂଳି ଆଉ ପାଉଁଶ ଭରିଯାଇଛି ।

# ଉପଦେଶ

ଆଲୋକ ଖୋଜନା

ଏ ପଥରେ କେବଳ କଣ୍ଟା ଆଉ ଗୋଡଆ ପଥର

ରକ୍ତ ଲପ୍ସୁ ଗନ୍ଧିଆ ଆଉ ଧୂଳି କୋକଣିଆଳ

ଅନ୍ଧାରକୁ ସେମିତି ସହିଯାଅ

ଭୁଆସୁଣୀ ଝିଅଙ୍କର ଚପୁଡ଼ା ରକ୍ତ

ଆଉ ଭୋଳା ଭୋଳା ଶିଶୁଙ୍କର

ଛଟପଟ କରୁଥିବା ହୃତ୍ପିଣ୍ଡ ଗୁଡ଼କୁ

ଏ ଅନ୍ଧାର ଲୁଚାଇଦେବ !

ତମେ ପିଉଥିବା ଦ୍ରାକ୍ଷାରସରେ

କେତେ ଟୋପା ରକ୍ତ ମିଶିଛି

ଏ ଅନ୍ଧାର ତମକୁ ଜଣାଇବନି ।

ଆଉ ପ.ଅଜଣଙ୍କ ସାଥିରେ

ସ୍ତବ ସ୍ତୁତି ପାଠ କରି

ବଙ୍ଗଳା ଭିତରକୁ ପଶିଯାଅ ।

ସାଁଚା ଆଉ ମନୁଷକୁ

ତମ ଆଖି ବାର ପାରବନି ।

## ମୃତ୍ୟୁ : ଗୋଟିଏ ଦେଶର

ହୁକୁମ୍ ସିଂ ମରିଗଲା
ତା ସ୍ତ୍ରୀ ଓ ପିଲାମାନେ କେଉଁଠି
ମୁଁ କହିପାରିବିନି
ତା ଘରର ଧୂଆଁ
ଆକାଶକୁ ଛୁଇଁ ସାରିଲାଣି ।

ହୁକୁମ୍ ସିଂକୁ ପିଲାମାନେ 'ସ୍ନଗ୍' ଡାକୁଥିଲେ
ସେ ଚକୋଲେଟ୍ ବାଣ୍ଟୁଥିଲା
ହୁକୁମ୍ ସିଂର ସ୍ତ୍ରୀ କଞ୍ଚା ଓଡ଼ିଆରେ କହୁଥିଲା
'ଆମ ଦେଶ ଏଇ ଓଡ଼ିଶା' ।

ସହରର ଲୋକମାନେ ରେଡ଼ିଓ ଶୁଣିଲେ
ଖବର କାଗଜ ପଢ଼ିଲେ
ହୁକୁମ ସିଂକୁ ଟେକ ନିଆଁରେ ଫିଙ୍ଗିଦେଲେ
ହୁକୁମ୍ ସିଂର ମେଲା ଅବୁଝା ଆଖି ଦୁଇଟା
ନିଆଁକୁ ପଚାରୁଥିଲା
'ମୋର ଦୋଷ କ'ଣ' ?

ସତ୍ୟଭାମା
ଆମେ 'ଭାଲୁବସା' ଗାଁ ଛାଡ଼ିଦବା,
ଭାଲୁବସାରେ ମୁସଲମାନ ବେଶୀ
କୋଉଦିନ ଖବର କାଗଜ କ'ଣ ଲେଖିବ
ମାଟି, ମହାନ୍ତି ଆଉ ତାଙ୍କ ମୁସଲମାନ ସାଙ୍ଗମାନେ
ଭାଲୁବସା ଦାଣ୍ଡକୁ ଲାଲ୍ କରିଦେବେ ।

ଆମ ଘର ଜଳିଯିବ
ଆମ ଝିଅମାନଙ୍କ ଆଖିରେ
ମୌସୁମୀ ଘନେଇ ଉଠିବ

କହ ଆମେ କୁଆଡ଼େ ଯିବା
ସଙ୍କରଙ୍ଗପୁର ?

ଯୋ ।ଗ୍ଦନ କୋଉ ମାଟି ନେତାକୁ
କଏ ମାନ୍ଦକ
ମାଟି ପିଲଏ ଧନୁଣର ଧଶ
ହମନ୍ତୁଙ୍କୁ ଗୋଡ଼ ଲବେ
ଗାଈ ଭଳ ମଣିଷ ହୁକୁମ୍ ସିଂ
ଆଜ ପ୍ରେତ ହୋଇ ଯାଇଛି
ଅମେ କୋଉଠି ରହିବା
କାହାକୁ ବିଶ୍ବାସ କରିବା ?

ଆମ ବଗିଚ୍ଚର ଫୁଲ ସବୁ
ଏମିତି ଜଳୁଛ
ବର୍ଷରକୁ ଜଗନ୍ନାଥଙ୍କୁ ଭେଟି ଦେଇ
ଆମେ ଖାଲି ଖାଉଥିବା, ଶୋଉଥିବା ।

# ବିଷାଦ

ଲମ୍ବା ଦୀର୍ଘଶ୍ୱାସ ଓ କିଛି ଅଶ୍ରୁ
ଏଇତ ଜୀବନ ଏ ମାଟିର
ଅତୀତରେ କେବେ ବସନ୍ତ ଆସିଥିଲା ଏ ମାଟିକୁ
ଆମ୍ବ ବଉଳ ଓ କୋକିଳର କୁହୁନେଇ
ବିଶ୍ୱାସ ହୁଏ ନା ।

ଆଜି ମୋ ଘର ପାଖରେ ବିଲୁଆ ଓ ଗୃଧ୍ରଙ୍କର
ବାଇବଲ୍, ଗୀତା, କୋରାନ୍ ଓ ଗ୍ରନ୍ଥ ସାହେବ ପାଠ
ଆଜି ପରୁଶକ ଟଣାଓଟରା ।

## ମୋର ପଲିଟିକ୍ସ

ମୋର ଅପରାଧ
କଅଁଳ ଝିଅଟିକୁ ଡ଼ାକ ବଙ୍ଗଳାକୁ
ଝିଙ୍କି ନେଲାବେଳେ
ମୁଁ ତା' ଉପରେ ଝଉଁ ପକାଇଦେଲି ।

ଏବେ ସେ ନଗରପିତା ହୋଇଯାଇଛନ୍ତି
ସହର ଲୋକେ କହୁଛନ୍ତି
'ମୁଁ ପଲିଟିକସ୍ କରୁଛି' ।

## ମାୟା ମହଲ

ଆମେ ଚିତ୍କାର କରି ଉଠିଲୁ
'ଆମ ପୂର୍ବ ପୁରୁଷ ଜ୍ଞାନର ଦିଗ୍‌ବଳୟରେ
ସୁନାର କିରଣ ବିଂଚୁଥିଲେ' ।

ଇତିହାସ ଦାନ୍ତ ଦେଖାଇ ବୋକାଙ୍କ ଭଳି ହସିବାକୁ ଲାଗିଲା
ଆମେ ଗର୍ଜି ଉଠିଲୁ, 'ଏ ଦେଶ ଅନଙ୍ଗର, ଜୟୀ ରାଜଗୁରୁର
ବଳିଦାନ ଆଜି ସାହସର ପତାକା
ଏଠି ଶିର ଉନ ଜ୍ୱଳନ୍ତି' ।

ଇତିହାସ ଚିତ୍‌କନା ଭୁବନେଶ୍ୱରର ପର୍ଦ୍ଦା ଉଠାଇ ଦେଲା
ରେଡିଓରୁ ଆବେଗସିକ୍ତ ସ୍ୱର ଭାସି ଆସିଲା
'ବୁଦ୍ଧ ଗାନ୍ଧୀର ଏ ପବିତ୍ର ଭୂମିରେ
ଭଗବାନ ଯୁଗେ ଯୁଗେ ଅବତରିଛନ୍ତି' ।

ପୁଅ ଝିଅ ଫର୍‌କନା ଆମେରିକା ଉଡିଗଲେ
ଚିଠି ଲେଖିଲେ 'ଆମେ ଆଉ ଫେରିବୁନି' ।

ଏମାନେ ସବୁ ହଜିଗଲେ
ପାହାଡ଼ ଖୋଲରେ, ମହାନଗରୀର ଜଙ୍ଗଲରେ
ସରକାରୀ ଲୁହା ମହଲରେ ।

ଏମାନେ ବୋକା ଥିଲେ
ଦେଶକୁ ଓ ମଣିଷକୁ ଭଲ ପାଉଥିଲେ
ଲଠି, ଗୁଳି, ବାୟୋନେଟ୍ ଏ ମାନଙ୍କୁ ଚହ୍ନିଥିଲେ
ସାର୍ଟିଫିକେଟ୍ ଦେଇଥିଲେ ।

ଯେହେତୁ ମୁଁ ଭାରି ଚାଲାକ୍
ମୁଁ ବଞ୍ଚି ଯାଇଚି
କେବଳ କବିତା ଓ ଭାଷଣରେ ବିପ୍ଳବ କରୁଚି
ଭଲ ପାଇବାକୁ ପସନ୍ଦରେ ଥୋଇ
ପଇସା ପାଉଚି ।

ବେଳେ ବେଳେ ସେମାନେ ଚମ୍କି ପଡୁଚନ୍ତି
ଲୁହା ମହଲରୁ ଓହ୍ଲାଇ ଆସୁଚନ୍ତି
ମୋ ଘରେ ପଶି ଅନ୍ଧି କନ୍ଧି ଖୋଜୁଚନ୍ତି
ତା' ପରେ ଠୋ ଠୋ ହସି କହୁଚନ୍ତି
'ମାରନା, ବିଚରା ବିଷାକ୍ତ ନୁହେଁ' ।

## ମନକଥା

ମତେ କହୁଚ, 'ପାଟି ବନ୍ଦ କର'
ପବନକୁ ପଚାରୁନ ସେ କାହିଁକି ବହୁଚି
ନଦୀକୁ ପଚାରୁନ ସେ କାହିଁକି ବହି ଯାଉଛି
ଘାସକୁ ମାଡ଼ିଦେଲେ ସେ କ'ଣ ଉଠିବନି
ସୂର୍ଯ୍ୟକୁ ଘୋଡ଼ାଇଦେଲେ ସେ କ'ଣ କିରଣ ବାଂଟିବନି ?

ମତେ କହୁଚ, 'ଗୀତ ଗାଅନା'
ଝରଣାକୁ ପ୍ରେମକଥା କହିବାକୁ ମନା କରୁଚ
ଗଛ, ପବନର ଲୁଚକାଳି ଖେଳ ବନ୍ଦ କରୁଚ
ମତେ କହୁଚ, 'ଏ ପଥରେ ଯାଅନା'
ମୁଁ ଏ ପଥରେ ଯିବି, କାରଣ ପଥର କଣ୍ଟା ସଫା କରିବା ମୋର କାମ
ମୁଁ ଜାଣେ ତମ ବନ୍ଧୁକ କାର୍ତ୍ତୁଜ୍‌ଭରା, ତମ ବାହୁ ଭ୍ରେକଲ୍ଲ
ମାତ୍ର ସମସ୍ତ ସହିତ କହୁଥିବା ଚକ୍ରକୁ ମୁଁ ବାତିଲ୍ କରି ପାରିଲେ ତ ?

ଯେଉଁମାନେ ଫୁଲଗଛ ପୋତିଥିଲେ
ମାଟିଆ ମାଟିଆ ପାଣି ଢାଳିଥିଲେ
ସେଇ ସ୍ୱର୍ଣ୍ଣ ପୁଷମାନେ
ସମସ୍ତେ ହଜିଗଲେଣି ।

ଉପବନର ପକ୍ଷୀମାନେ
ଯାହାଙ୍କ ଚକ୍ଷୁରୁ ରାଜକନ୍ୟାର ହସ
ଝରି ପଡୁଥିଲା
ସମସ୍ତେ ଉଡ଼ି ଗଲେଣି ।

ଏବେ ଡର୍‌ବଳପୁର ଧାରେ ଧାରେ
ବନ୍ଧୁର ଏକ ପ୍ରେତପକ୍ଷୀର
ଝୁର ଛାୟା
ଧରଣୀର ମୁଠା ମୁଠା ମାଟି
ରକ୍ତ ଜୁଡ଼ୁ ବୁଡ଼ୁ ।

## ପଲଟିକ୍ସ

ଦୁଃଶାସନ ଯାଜ୍ଞସେନୀଙ୍କୁ ବିବସନ କରୁଛି
ଓକିଲ, ଡାକ୍ତର, ଅଧ୍ୟାପକମାନେ ବସିଛନ୍ତି
ପାହାଡ଼ ଭଳି ଶାନ୍ତ
ଆଉ ଆକାଶ ଭଳି ଉଦାର ।

ସଭାରୁ ଉଠି ଆସିଲାରୁ
ମନ୍ତ୍ରୀ ମତେ ଖେଙ୍କି ଉଠିଲେ
ଆଉ ପାଠୁଆ ଭାଇମାନେ କହିଲେ
ମୁଁ ପଲିଟିକ୍ସ କରୁଛି ।

ଆମେ ଚିତ୍କାର କରି ଉଠିଲୁ.
'ଯେଉଁ ପୋଖରୀର ଶୀତଳ ଜଳ
ଆପଣମାନଙ୍କୁ ତୃପ୍ତି ଆଣିଦେଲା
ତାକୁ ଆମ ପୂର୍ବ ପୁରୁଷ ଖୋଳାଇଥିଲେ' ।

ସେମାନେ ପଚାରିଲେ, 'ଆଉ ଏଇଟା'
ଆମେ କଣ କହିବୁ
ଆମ ପାଦ ତଳର ପଚ୍ଚ ଗାଡଆ ତ
ସେମାନଙ୍କ ଆଖିରେ ପଡିଗଲଣି ।

ଦେଖ ମୋର ଭ୍ରାତାଙ୍କ ବଦନ

ମୁଖ୍ୟମନ୍ତ୍ରୀ ଡ଼ାକଚନ୍ତି
କାଳଦାସ, ସେକ୍ସପିଅରଙ୍କ ବଂଶର ବୋଲି
ଜଣ ମୋଡ଼୍‌ଥିବା ଲୋକ
କବିତାପାଠ କରୁଚନ୍ତି ।

ଇସ୍ ! ମାଂସ ଆଜ ଇଟାଲି ମଦର ସୁଗନ୍ଧକୁ ଡେଇଁ
ଏ ଘର୍ମ ଗନ୍ଧ କୋଉଠୁ ଆସୁଚି
ହଇହେ ! ସଭାମଞ୍ଚକୁ ଏ ମୂର୍ଦ୍ଧାରଟା କୋଉଠୁ ଆସିଲା ।

ମନ୍ତ୍ରୀମାନଙ୍କ ଲୋକେ ଯେତେବେଳେ ମାରଚନ୍ତି
ନିଶ୍ଚୟ କିଛି ନା କିଛି ଦୋଷ କରିଥିବ ।

ମୂର୍ଦ୍ଧାରର ମୁହଁଟାତ ଚିହ୍ନା ଚିହ୍ନା ଜଣା ପଡ଼ୁଛି
ହେ ଭଗବାନ ! ବଡଗ ଗଡ଼୍‌ସେଟାକୁ ମିଛରେ ଫାଶି
ଦେଇଦେଲେ ହୋ !

ସନ୍ଧ୍ୟା ହେଉ ନ ହେଉଣୁ
ଘୋଡ଼ା ଛୁଟାଇ ଚାଲିଥିବା ବେଳେ
ନାନା ଭାଷାରେ ସେମାନେ ଗାଉଥିଲେ
ଗୀତା, କୋରାନ୍ ଓ ଗୁରୁବାଣୀ ।

ସେମାନଙ୍କ ଖଦାପୁ ପଟରେ
ଧୂଳିରେ ଚଡ଼ି ରହୁଥିବା
ରକ୍ତାକ୍ତ ନାଗଟି
ଇତିହାସର ଫିତା ଖୋଲୁ ଖୋଲୁ
କହି ଉଠିଲ
'ମୋ ପିଲାଙ୍କୁ ମନାକର
ସେମାନେ ଏରକା ବନ ଆଡ଼େ
ଦଉଡୁଚନ୍ତି' ।

ମନ୍ତ୍ରୀ କହିଲେ, 'ଅଧ୍ୟାପନା କର
କବିତା ଲେଖ
ରାଜନୀତି କରନା' ।

ପୋଲିସ କହିଲା, 'ଗୁଣ୍ଡା, ଡକାୟତଙ୍କୁ
ଧରିବୁ କାହିଁକି
ସେମାନେ ଶିକ୍ଷକଙ୍କର ସାପ' ।

ବେପାରୀ କହିଲା, 'ଚାନ୍ଦା ବହୁତ ନେଲେ
ଖାଦ୍ୟ ଭେଜାଲ ନ କଲେ
ଚଳିବୁ କେମିତି' ?

ଅଫିସର୍ କହିଲା, 'ସାର୍ଟିଫିକେଟ୍ ମୁଁ ଦେଖିଛନ
ପାଞ୍ଚଟି ପଦ
ମନ୍ତ୍ରୀଙ୍କର ସୁପାରିଶ୍ ଥିଲି
ଲୁକସ ନଅ' ।

ଟିଅଟି କହିଲା, 'ତିନ ଦିନ ଉପାସ
ଖବର ଆସିଛି
ସ୍ବଜନର ଦାମ୍
ଗୋଟିଏ ରୁଡ଼' ।

ରେଡିଓ କହିଲା, 'ରାସ୍ତା ତିଆରି ହୋଇଛି
କାରଖାନାରୁ ଧୂଆଁ ଉଠୁଛି
ସହର ବଡ଼ ହୋଇଛି
ଯୋଜନା ପୂରା ସଫଳ' ।

ଭଲ ଲୋକମାନଙ୍କ ପାଟିରେ କୋଲପ
କାଳେ ଶ୍ରୀଅଙ୍ଗ ଘାଉଡ଼ ହୋଇଯିବ
ଆଜ କଏ ରସ୍ତାରୁ କଣ୍ଟା କାଢ଼ିନେଲେ
ସେମାନେ ଆରାମ୍‌ରେ ଚଲନ୍ତେ ।

ଇତିହାସ ଏ କଥା ମାନ ନେଲେ ତ ?

## ଆକାଙ୍କ୍ଷା

ଗତ ଆଜି କେତେ ଅବ୍ଦ
ଚିତ୍କାର କରୁଥିବା ଅଫୁଟା କଳିକାକୁ
ଯେଉଁ ଧଳା-ଦାଢ଼ି ବାଲା ଝାମ୍ପି ନେଲା
ତା' ମୁଣ୍ଡର ଗାନ୍ଧୀଟୋପି
ମୁଁ ପରିଷ୍କାର ଦେଖିଛି ।

ଗାଁରେ ନିଆଁ ଲଗାଇ
ଯେଉଁମାନେ ସମ୍ପତ୍ତି ଜୁର କରୁଥିଲେ
ସେମାନଙ୍କ ସ୍ୱର ଚିହ୍ନା ଚିହ୍ନା ଲାଗୁଛି
ଭୁବନେଶ୍ୱର ମୁଁ ସବୁବେଳେ ଯାଏ କି'ନା ।

ଇସ୍କୁଲ ପିଲାଙ୍କ ଉପରେ
ଯେ ଗାଡ଼ି ମଡେଇ ଦେଲେ
ସଭାସମିତିରେ ସେ ଫୁଲମାଳ ପିନ୍ଧନ୍ତି ।

ଅପେକ୍ଷା କରିଛି କେତେବେଳେ ସୂର୍ଯ୍ୟୋଦୟ ହେବ
ମୁଁ ତାଙ୍କୁ ଗୋଟି ଗୋଟି ଚିହ୍ନାଇ ଦେବି ।

ବିହଙ୍ଗାବଲୋକନ

ମୁଖ୍ୟମନ୍ତ୍ରୀ ଆସୁଚନ୍ତି
ଛଡଓ ଖବର ଦେଇଛି
ପ୍ରତ୍ୟେକ ଇସ୍କୁଲ୍ ମାଷ୍ଟର
କୋଡ଼ିଏରୁ କମ୍ ପିଲା ମିଟିଂକୁ ଆଣିଲେ
ଦୂରକୁ ବଦଳି ହୋଇଯିବ ।

ପାର୍ଟିନେତା ବ୍ଲକ୍ ଚେୟାରମ୍ୟାନ୍
ମାଷ୍ଟ୍ରାଣୀକୁ ଗର୍ଭ କରି ଦେଇଛି
ବର୍ଷସାର ଲୁହ ବନ୍ଦ ହେଉନି ।

ମନ୍ତ୍ରୀଜା କଲେଜର ମାଲିକାନା ପାଇ
ଧର୍ମଘଟ ଚାଲିଛି
ଛାତ୍ରୀ ନିବାସ ପାଇଁ ଯୁବନେତାମାନେ
ପ୍ରଚୁର ଲାଳ ଗଡ଼ଉଛନ୍ତି ।

ଏମ୍. ପି., ଏମ୍. ଏଲ୍. ଏ.
ଥାକ ଥାକ ମିଛ
ଓ ତେଲ ସଂଗ୍ରହରେ
ବ୍ୟସ୍ତ ରହିଛନ୍ତି
ନିର୍ବାଚନ ପାଖେଇ ଗଲାଣି କି'ନା !

ରାମାୟଣ ସୀତା ପାଇଁ
ଭଲ ଲୋକମାନେ
ଖୁବ୍ ଲୁହ ଢାଳୁଛନ୍ତି
ଆଉ ଖଡ଼ଗଡ଼ିଆ ରାବଣ ପାଖରେ
ହାତ ମଳୁଛନ୍ତି ।

ଆଦର୍ଶର ହୁଇସିଲ୍ ଶୁଣି
ମଣିଷ ଯେତେବେଳେ ତାର ଗଇଳରେ ଦୌଡ଼େ
ଆଜ ଭବିଷ୍ୟତର ଅରୁଣିମାକୁ
ନିମନ୍ତ୍ରଣ ପଠାଏ
ସମ୍ପୂ ଚମକ ପଡ଼େ
ଇତିହାସର ପାଷଣ୍ଡ
ଦୃଢ଼ତର ହୋଇଯାଏ ।

ପୃଥିବୀର ସବୁ ଦେଶରେ
ଆଦର୍ଶର କଳା କଳା ରକ୍ତ
ଇତିହାସର ସବୁ କୋଠରୀରେ
ତା'ର କୁଢ଼ କୁଢ଼ ଧଳାହାଡ଼
ଆଜ ହତ୍ୟାକାରୀର ମୁଣ୍ଡରେ
ଝାଗର ମୁକୁଟ ।

# ଗାନ୍ଧୀ ହତ୍ୟା

ଗାନ୍ଧୀଙ୍କୁ ମାରି ଦିଆଗଲା
ଗାନ୍ଧୀ ଦାଉ ଦାଉ ଜଳି ଉଠିଲେ
ନିଆଁ ଧାସକୁ ଡରି
ଫାଖଲେକ ଗେଟ୍ ଖୋଲିଦେଲେ ।

ଶତାବ୍ଦୀର ଅଳସ ଭଙ୍ଗି
ଦଳେ ରେରେକାର କରି ମାଡ଼ି ଆସିଲେ
ସବୁ କୋଠରୀ ଖୋଜି ଜାଣିଗଲେ
ଲର୍ଡ଼ ବେଣ୍ଟିକ୍ ନାହାନ୍ତି ।

ବାଲ୍ଟି ବାଲ୍ଟି ରକ୍ତ ବୋହି
ସେମାନେ ଗାନ୍ଧୀ ନିଆଁକୁ ଲିଭାଇ ଦେଲେ ।

ଗାଁ ଲୋକମାନେ ଯେତେବେଳେ ପାର୍ଟି କରୁଚନ୍ତି
ପିଲାଗୁଡ଼ାକ ଶେତା ଶେତା ଦିଶୁଚନ୍ତି
ଯୁବକମାନଙ୍କ ଆଖି କାଢିଲା କାଢିଲା
ଆମକୁ ଆଶ୍ଚର୍ଯ୍ୟ ଲାଗୁନି ।

କଲେଜ ଫଙ୍କସନ୍

ଝିଅମାନେ ଫୁଲମାଳ ଧରିଥିଲେ
ମେଷଶାବକ ଭଙ୍ଗୀରେ
ଅଧ୍ୟାପକମାନେ ଡାୟାସ୍‌କୁ ଅନାଉଥିଲେ
କଅଁଳା ବାଛୁରି ହରାଇଥିବା ଗାଈଭଳି
ଅଧ୍ୟକ୍ଷ ଏପଟ ସେପଟ ହେଉଥିଲେ
ମକଦ୍ଦମା ଜିତିଥିବା ମାମଲତକାର୍ ଭଳି
ଛାତ୍ରନେତା ନିଶ ସାଉଁଳାଉଥିଲେ
ସେ ଆସିଗଲେ ।

ଏନ୍ ସି ସିର ଧକ୍କଡ଼ ବ୍ୟାଣ୍ଡ୍ ମାନେ ଚମକି ଗଲେ
ସହରର ଡେଙ୍ଗା ଡେଙ୍ଗା ଲୋକମାନେ ଚୌକିରେ ବସିଗଲେ
ଅଧ୍ୟକ୍ଷ ଭଜଗୋବନ୍ଦ ଗାଇଲେ
ପିଲାମାନେ ତାଳି ମାଇଲେ ।

ହଠାତ୍ ଭଗିଆ ଚପ୍ରାସୀ ମୋ କାନରେ କହିଲା
'ଏ ତ ମଙ୍ଗରାଜ ସାଆନ୍ତେ !'

ପରଦୀପ

ରକ୍ତ ଆଟେପ ପାରଫେପେ
ଦନକ୍ରୁଷ୍ଟ, ଲ୍ଲେମଗ, ପିଙ୍କିକ
ରକ୍ତର ଜୁଆରେ ଭାସି
ଝଇ ଓ କଜଡ଼ ଫିଙ୍ଗି
ହାତେ ତା'ର ଚୂନା ଚୂନା
କଅଁଳ ଶିଶୁର ଭବିଷ୍ୟତ
ପାଉଁଶିଆ ବବଣା ବୋହୂର
ଅସମ୍ପୂ ଭଙ୍ଗା ହାତ କାଚ ।

ତୁଙ୍ଗ ସୌଧ, କଥାର ଜଙ୍ଗଲେ
ହିଂସ୍ର ରକ୍ତ ଜନ୍ମନେଲ
ଭୁବନେଶ୍ୱରରେ
ଫାଇଲ-ମେଳାରେ
ନଖ, ଦାନ୍ତ ତୀକ୍ଷ୍ଣ କଲ
କ୍ଷମତା ଶାଳରେ ।

ପାପକାନ, ଆରକ୍ଷୀ ସଜାଡ଼
କଳାପାହାଡ଼ ଆସିଛ
ହରର ବାଡ଼କୁ ଭାଙ୍ଗି
ମହାନଦୀ ପାଣି ପିଇ ।

ଗୋଷ୍ଠ କବରର ଘାସ ଉପାଡ଼ନ
ସତ୍ୟବାଦୀର ମାଟି ଉଖାରଲ
ଓ'ଡାୟାର ଆଇକ୍‌ମ୍ୟାନ୍ ଆସୁଚନ୍ତି
ଲମ୍ବା ଲମ୍ବା ପାହୁଣ୍ଡ ପକାଇ
ମଧୁ, ଗୋପ ନଦ ଭଜଗଲେ
ଏ ଧରଣୀ ଫାଟିପିବ ।

ମାର୍ଚ୍ଚ ଉଣିଶି ଚଉସ୍ତରୀ
ଦିନ ଦ୍ୱିପହରେ
ସୂର୍ଯ୍ୟ ବୁଡ଼ିଗଲା
ଲଜ୍ଜା ଆଉ ଲୁହ ଲହରୀରେ ।

ଚାରିପାଖ ଅଙ୍ଗେ ଅଙ୍ଗେ
ଧର୍ଷଣର ନର୍କ ଜ୍ୱାଳା
ନଳ, ଗୁଳି, ଖାକି ଆଉ ନାଲିଟୋପି
ଆକାଶ ଛୁଆଁ ନିଆଁ
ମାଇଲ୍ ଲମ୍ବା ଧୂଆଁ ।

ପୋଲିସ୍‌ର କୋମଳ ସ୍ପର୍ଶରେ
ହଣ୍ଟରର ଦାନ୍ତ ଗଳିଗଲା
ଟପ୍ ଟପ୍
ଲୋହ ନସ୍ୱର୍ଗର ଲାଲ୍ ପଥ ପରେ
ଲେଟିଗଲା ଭଙ୍ଗା ଭଙ୍ଗା କଳା କଳା ଦେହ ।

ଏ ମାଟି ଯାହାକୁ ଦେଲା
ଗନ୍ଧ ଆଉ ସ୍ୱାଦ
ଏ ସୂର୍ଯ୍ୟ ଯାହାକୁ ଦେଲେ
ଜନ୍ମ ଓ ଅକାଳର ଗତି
ସେ ଏଥର ଶୋଇଗଲା ଚିରଦିନ ପାଇଁ
ଗୁଳି ଆଉ ବାୟୋନେଟ୍
ନାନାବାୟା ଗୀତ ଶୁଣି ଶୁଣି ।

ଧାନ କିଆରୀରେ ଛିଡ଼ା କାକେ
ବାହୁନି ବାହୁନି
କପୋତ ଫେରିବ ନାହିଁ
ବୃନ୍ଦାବନ ପଥର ପରି ଖୋଳ ଉଜ୍ଜଳ
ସ୍ପନ୍ଦିତ ଶାରୀ ଏକ କାଳି
ଉପଦ୍ରବୁତାକୁ ଚିପୁଡ଼ି ଚିପୁଡ଼ି ମୁକୁଟ ଉଠେଇ ମାଉ ।

## ସ୍ୱପ୍ନ ଧର୍ଷଣ

ହେ ମୋର ଅସହାୟା ପ୍ରିୟତମା
ବଜଘାଟର ପଥ ଧାରରେ
ତମର କାଳକୃଷ୍ଣ ଚକ୍ଷୁ
ଅଜ ସ୍ପନ୍ଦିତ ଜଡଗ୍ର
ସୁରକ୍ଷିତ ରକ୍ଷୀ ପାଟେଲନ ।

ରାଜଧାନୀର ପ୍ରେତଚକ୍ଷୀ
ତମକୁ ଝାମ୍ପମାରି ନେଇଗଲେ
ଆଜି ଉଚ୍ଛିଷ୍ଟ କରି ଫୋପାଡ଼ିଦେଲେ
ନଲ୍‌ବଣର ଇଲାକାରେ ।

କଲମକୁ ବନ୍ଧୁକ ସଜାଇ
ମୁଁ ଖୋଜୁଚି ବଞ୍ଚକକୁ
ଉଦ୍‌ଘାଟକ ଆଜ ମୁଖ୍ୟ ଅତିଥି ମେଳରେ ।

ମୋ ଆଖିରେ ପ୍ରତିଶୋଧର ନିଆଁ
ମୋ ହୃଦୟରେ ଟାଟା କମ୍ପାନୀର ଲୁହା ।

## ଶକୁନ ଉବାଚ

ଗୋପନ କର—
ବିଦ୍ରୋହୀ ବିବେକଠାରୁ
ସବୁଜ ହୃଦୟଠାରୁ
ସହାନୁଭୂତି ଛକକୁ ମାଇଲଏ ଦୂରରେ ପକାଇ ।

ଗୋପନ କର—
ଭଙ୍ଗା ହୃତ୍ପିଣ୍ଡ ଉପରେ ପାଦ ଥୋଇ ଥୋଇ
ଲୁହର ପରିଖା ଡେଇଁ ଚଢ଼ି ଚଢ଼ି
କ୍ଷମତାର ଦୁଆର ପାଖକୁ ।

ଗୋପନ କର—
ସତ୍ୟ ଜାଣିବାର ବିପଦଠାରୁ
ଭୟ ପାଇବାର ଦୁର୍ବଳତାଠାରୁ
ଯୁକ୍ତିର ପିଞ୍ଜରେ ଚଢ଼ି ପନ୍ଥକୁ ନ ଦେଖି ।

ସବୁ ମାଟିର ଇତିହାସ ବାଦଶାହ ଓ ବନ୍ଦୀର ଇତିହାସ
ସବୁ ଯୁଗରେ ବାଦଶାହର ଜୟ ଜୟକାର
ଏବଂ ବନ୍ଦୀର ସର୍ବନାଶ ।

## କଳ ସହରର ଗୀତ

ଜହ୍ନ ହସୁଛି ଏକ ଶସ୍ତ୍ରଳା ନାୟିକା ଭଳି
ଗଳିପଥରେ ମହୁଆ ମଧୁର ନିହ୍ୱରଣ
ପବନ ଦୋହଲାଇଛି ଚଞ୍ଚଳ, କଗୁଳିଆ ଶିଂଘିଟିଏ
ଶିଟିଆ କଣ୍ଢ ଭାବୁଛି ପିଜା ଖାଇ ଖାଇ ।

ସ୍ପିଷ୍ଟକୁ ତା'ର ବଣରେ ବାଘ ଭୁଣ୍ଡନେଲ
ଝିଅକୁ ଫସେଇ ଦେଲା କୁମ୍ଭୀର ଗୁମସ୍ତା
ଝାଳର ଫସଲ ଗଲା ସାହୁକାର ଶଗଡ଼ରେ
କ୍ୟାଙ୍କଡିଆ ଛେଳି ମଲା ବେଗ ଭୋଗି ଭୋଗି ।

ଟେଲିଭିଜନ୍‌ରେ ନେତାର ଗୋଲଗାଲିଆ ମୁହଁ
ହଜାରର ଲୋକଙ୍କର ସଭା, ପଟୁଆର
କଣ୍ଟ ଟଙ୍କା ଫିଙ୍ଗା ହୁଏ, ମାଇକ୍ ରଡ଼ ଦିଏ
କୁଡ଼ିଆର କଥା କରେ ନଥିବ ବସ୍ତିର ।

ପାଣି ନାହିଁ, ଫାଇବ୍ ଷ୍ଟାର୍‌ରେ ବୋତଲର ଭିଡ଼
ତେଜ ନାହିଁ; କୁର୍ମା, ପଲଉ ଚାଟା ଲାଗିଯାଏ
ଲୁଗା ନାହିଁ; ଭେକ ଡ଼ାକେ 'ଯଉବନ କଣ'
'ସମାଜ ବାଦ' ହସୁଛି ଟହ ଟହ ଦିଲ୍ଲୀ ସହରରେ ।

## ସୁଖଂ ଜୀବେତ୍

ଧର୍ମ ଘଣ୍ଟିକା ଘଣ୍ଟୁ ଗିଳ ଢଅନା
ଉଜୁଡ଼ା ମ୍ଲାନ ଦେଖି ଗୁମ୍ଫାରେ ଉଠି ଆସୁଥିବା ହୁକ୍କା
ଦପ୍‌କନା ବନ୍ଦ ହୋଇଯିବ ।

ରକ୍ତ କୁଣ୍ଡରୁ ପ୍ରଚୁର ମୁକ୍ତା ଗୋଟାଉଥିବା ଲୋକେ
ଆଉ ଜନ୍ମରେ ଅମାପ ପୁଣ୍ୟ କରିଥିଲେ ।

ଅଭିଶାପ, ଲୁଣ୍ଠନ, ହାହାକାର ସ୍ରଷ୍ଟାଙ୍କ ଖିଆଲ୍
ତା'ର ଅନ୍ତ ହୋଇପାରେନା ।

ହାତକୁ ଆସିଥିବା ସୁନା କଳସ
କେତେ ଲୁହ ଲହୁ ଚହିଁରିଚି
ତମର ତା' ଭିତରା ଦାଉକାଳ କ'ଣ ?

ଜଗନ୍ନାଥେ ବସିରନ୍ତି
ଅଠାର ବେଣୀ ହେଲେ
କାଳିଆ ଘୋଡ଼ାରେ ଚଢ଼ି
ବାରହାତିଆ ଖଣ୍ଡା ବୁଲାଇବେନ ?

## ମୁଁ କ'ଣ କରିବ ?

ମ୍ୟାଜିକ୍ ଶୋ ଦେଖିବ
ଦିଲ୍ଲୀ, ଭୁବନେଶ୍ୱରରୁ ଯାଦୁଗର ଆସିଛନ୍ତି
ସହରର ହଳଚଳ ଝୋକାଟା
ଝିଅଙ୍କୁ କମେଣ୍ଟ କରି ଯେ କାଲି ମାଡ଼ ଖାଇଥିଲ
ଚେୟାର୍‌ମ୍ୟାନ୍ ନିର୍ବାଚନରେ ଜିତିଗଲା ।

ଗଫୁର ମିଆଁର ନିଶା ଦୋକାନରେ
ଯେ ସନ୍ଧ୍ୟା ଛଅଟାରେ ଆଡ୍ଡା ଦେଉଥିଲା
ରାତି ଆଠଟାରେ ନାରୀ ସେବା ସଦନରେ
ନିଶା ନିବାରଣୀ ସଭାରେ ଭାଷଣ ଦେଉଛି ।

ଗରିବ ଘରର ସୁଶୀଳ ଝିଅଟି
ପୁରୁଷଙ୍କ ଗ୍ଲାନ୍ସ୍ ରୁ
ଯେ ଦୂରେଇ ରହୁଥିଲା,
ବିବାହ ନ କରି ମଧ୍ୟ
ଚାକିରି ଓ ଗର୍ଭ ଏକା ସାଙ୍ଗରେ ପାଇଛି ।

ଟେଲିଭିଜନ୍ ଦେଖି, ଭାଷଣ ଶୁଣି
ବହୁଲୋକ ପଚାରୁଛନ୍ତି
ଦୁଇରେ ଦୁଇ ମିଶାଇଲେ
ପାଞ୍ଚ କାହିଁକି ନ ହେବ ।

ମୋତେ ସତର୍କ କରି ଦିଆଯାଇଛି
ଦୁଇରେ ଦୁଇ ମିଶିଲେ ଚାରି କହି
ପଲିଟିକ୍ସ କରନା
ଚାକିରି ଚାଲିଯିବ
ମୁଁ କ'ଣ କରିବ ?

# କୋରାପୁଟର ଗୀତ

ଜଙ୍ଗଲରେ ଆମ୍ବ ପାଚିଛି
କାଉ କୋଇଲି କଟରି ମିଟରି ହଉଚନ୍ତି
ହେଡ୍ ମିଷ୍ଟ୍ରେସ୍ ଜନ୍ମ ଯାଇଚନ୍ତି
ଛନୁ ପାତଳୀ କନକଲତାର
ଯୌବନ ଜଳିବ
ଡାଳ ଟଙ୍ଗଣାରେ
ମଉଳା ବପୁସବୁ
ମହୁଆ ଖେଳରେ ।

ଜଙ୍ଗଲରେ ବାଘ ମାଡିଛି
ବଣୁଆ ବାରୁଦା ପାଟଳ ହୋଇଛି
ହେଡ୍‌ମାଷ୍ଟର ଚିଠି ପାଇଚନ୍ତି
ଏ ମାସର ପାଣି ଟଙ୍କା
ଶୀଘ୍ର ନ ଦେଲେ
ମନ୍ତ୍ରୀ ମାନ୍ନାପୁରୁଙ୍କ କୋପ
ସମ୍ଭାଳି ହବନ ।

ଯାଠିଆ ମରଦମାନଙ୍କର
ହାତର କାଚ ବଜ୍ରୁ ଥାଉ
ଗଜାଖିଆ ମିଳିବ
ବଦଳି ହବନ ।

## କବିତାର ଜନ୍ମ

ନରକ୍ର ଅନ୍ଧକାର
ଶୁନ୍‌ଶାନ୍‌ ମୁଲକ
ହେମାଳ ପବନ ଫିଙ୍ଗୁଛି
ଉପ୍ପର ମୁଠା ମୁଠା ଜୀବାଣୁ ।

ଫଣୀ ସ୍ପିକ୍ଟିଏ ଭାସି ଆସିଲା
କୁମୁଦ ଭଳି କରୁଣ ଆଉ ଲହରୀ ଭଳି ଅଶାନ୍ତ ।

ଆଲୋକ ରଶ୍ମି ଟିଏ
ଡାକ ବାକ୍ସରେ ଗଳାଇ ଦେଲା
କଅଁଳ ପତ୍ର ପାଇଁ ଟୋପାଟିଏ
ଫୁଲଟିଏ ଆକୁଳରେ ପଚାରୁଛି
'ଜାତକ କିଆର ହବନା' ?

ବନ୍ଧୁକ ଖୋଜି ବୁଲୁଛି
'ଅପରାଧୀ କିଏ ?'

ବଦାନ୍ୟୀ ପ୍ରେମିକା ପ୍ରତି

ଇଚ୍ଛା ଯଦି ହୁଏ
ଫେରି ଆସ ଧୀରେ
ମୁକୁଳା ଦୁଆର ଦେଇ
ମୃତ ତାରକା ଉପରେ ପାଦ ଥୋଇ ଥୋଇ ।

ଦୀପମାଳା ଲିଭି ଲିଭି
ଘଣ୍ଟାଧ୍ୱନ ଫଟା ଫଟା
ଫୁଲର ବାସ ହଜିଛି ପବନ ଛୁଟରେ ।

ସମୟର ଟିଗଲ ହାଟରେ
ଠିକ ଠିକ ସ୍ୱପ୍ନଙ୍କର
କର୍ଣ୍ଣମଧୁ ଭେଡା ।

ଆକାଶର ନୀଳ ଆଖିରେ
ଝରେ ତାର ଗଇଜର ଲୁହ ।

ଗୋଲମ୍ ପୁଷ୍ପରେ
ଶଢ଼ ଅସେ ଛପି ଛପି
ଶଢ଼ ବୁଲେ ନାଲି, ନେଳି ଜାମା ପିନ୍ଧି
ଶଢ଼ ଲମ୍ଫଦଏ ଆକାଶକୁ
ଶୂନ୍ୟ ଦେବତାକୁ ଖୋଜି
ଶଢ଼ ଖୋଲେ ନାସ୍ତର ବ୍ଲାଉଜ୍
ଶଢ଼ ଭୁଲିଯାଏ
ମଣିମାଙ୍କ ବ୍ୟାଙ୍କ୍‌ରେ
ଯୌବନ ଡପୋଜଟ୍ କରି
ଦଓ୍ୟାଳିଆ ଢୋଇଥିବା ଟିଅଟିକୁ ।

ଶଢ଼ ଦେଖେନାହିଁ
ଶେକର ଭକ୍ତଙ୍କ ନଖ ଆଁଚୁଡ଼ାକୁ
ସେ କାନରେ ଭୁଲାଦଏ
ମଣିମାଙ୍କ ସିଗାର୍ଣ୍ଣ ଦେଖିଲେ ।

ଶଢ଼ ପିନ୍ଧେ କାନରେ କୁଣ୍ଡଳ
ଆଜି ହାତରେ କଙ୍କଣ
ତା'ପରେ କୁହାଟ ଘ୍ଲଡ଼େ, 'ଘ୍ଲମୂ ଘ୍ଲଡ଼ ! ଘ୍ଲମୂ ଘ୍ଲଡ଼ !'
ପାଟହାତୀ ପାଦତଳର ଫୁଲ
ଶଢ଼ ଗୋଟାଏନ
ସୃଷ୍ଟିକାଣ୍ଡାର ଅସହାୟ ପଥକୁ
ଶଢ଼ ଅନାଏନ
ପର୍ଦ୍ଦାଟେକ ଦରବାରକୁ ଗୁହିଁଦଏ
ଆଜି ଗରୁଡ଼ାସନରେ ବସିଯାଏ ।

ଜାତକ : ମୋ କବତାର

ମୋ ସ୍ୱରପଟେ ସେମାନେ ଠିଆ ହେଲେ
(ସେମାନେ ମାନେ ଛନ୍ଦଗ୍ରଣୀ, ବଳାସିଗ୍ମ ଓ କେତେ ନାଁ ନଜଣା ଝିଅ)
ହସରେ ଫାଟି ପଡିଲେ
ଆଉ କହିଲେ
'ସକାଳୁ ସକାଳୁ ବୃହନ୍ନଳାର ମୁହଁ ଦେଖିବା ପାପ'
ମୁଁ ତରବରରେ ଦୁଇ ପେଗ୍ ଜଗନ୍ନାଥ ଭଜନ
ଚଢ଼ାଇ ଦେଲି
(ଜଣେ ବନ୍ଧୁ ଏ ଉପାୟ ବତାଇ ଦେଇଥିଲେ)
କାଫ୍କା, କେକେଗଣ୍ଡଙ୍କଠୁ ଧାର ମାଗିଥିବା
ମୋ ନିଃସଙ୍ଗତାର ଖୋଳକୁ ସେମାନେ ନଖରେ ଚିରିଦେଲେ
ହେଲେନ୍ ଦେହର ଖାଲ ଢିପ ଚିପୁଥିବା
ମୋ କଲମକୁ ଦାନ୍ତରେ ଗଣ୍ଡ ଗଣ୍ଡ କରିଦେଲେ
ସେ ଦିନୁ ମୁଁ ବାରୁଦ ଖୋଜୁଛି
ଆଉ ଭୁବନେଶ୍ୱରଥାଙ୍କ
ଧାସରେ ସିଝୁଛି ।

ବୁର୍ଲ

ବପୃସର ରାଜପଥେ ନୁହେଁ
ରେଳର ସୁଡ଼ଙ୍ଗଦେଇ ନୁହେଁ
ଏକ୍ସିଡେଣ୍ଟର ରକେଟ ଚଢ଼ି ନୁହେଁ
ପାରମାଣୁ ଢେଉଁ ବୁର୍ଲା ହସ୍ତର ଭିତରେ
ମୃତ୍ୟୁ ପଶିଗଲା ।

ଯେଉଁମାନେ ହଜିଗଲେ ମହାନଦୀ ଜଳକଣେ,
ଯେଉଁମାନେ ମିଶିଗଲେ ପଞ୍ଚଭୂତଙ୍କର ମେଳେ
ସେମାନଙ୍କୁ ଆମେ ଭୁଲିଗଲୁ ।

ଆମ ନଡକୁ ସେମାନେ ଛଦା କରିଥିଲେ
ଆମ ଭାତକୁ ସେମାନେ ପିଠା କରିଥିଲେ ।

ଚୌଦଯୋଡ଼ା ମେଲି ମେଲି, ଆଖି ପଚାରୁଛି
‘ ଏ ମାଟିରେ ଜନ୍ମହେବା ଛଡ଼ା
ଆଉକଣ ଅପରାଧ ଆମର ଦେଖିଛ ?’

ପକ୍ଷୀବସା ଖଣ୍ଡ ଖଣ୍ଡ
ମାଟିଯାକ ରକ୍ତ
ଗଛ ସାରା ନିଆଁ
ମାଳୀ ଛଟପଟ
ପାଇକ ମୁହଁରେ ମିଠା
ନବାବ୍ ହାତରେ ବଂଶୀ
ପାଠବାର ଲୋକମାନେ କଲମ୍ ମଞ୍ଚରେ,
ପାଠୁଆଙ୍କ କାନପାଖ ମେଞ୍ଚେ ମେଞ୍ଚେ ଭୁଲା ।

ଏଣିକ ଆମେ ହାତର ରକ୍ତପୋଛା ମୁକୁଟ ସଜାଡିବା
କମ୍ପା ଲୁହକୁ ଟୋକେଇରେ ଧରି ଗାଁ ଗାଁ ବୁଲିବା ।

× × × ×

କିଛୁ ବଦଳିଲାଣି
ସିଁବାଲୁଆଙ୍କର ଝଣ୍ଡା ପ୍ରୋସେସନ୍
ରମ୍ଭା ଆଉ ଉର୍ବଶୀଙ୍କ ଆଖିମରା
ନାରଦଙ୍କ ଚୁଗୁଲି
ଚଣ୍ଡମୁଣ୍ଡଙ୍କ ମିଟିଂକୁ ଟ୍ରକ୍‌ଯାତ୍ରା
ସବୁ ଆଗପରି ।

ଚନ୍ଦ୍ର, ସୂର୍ଯ୍ୟଙ୍କୁ ଲଙ୍ଗଡିଆ ଟେଟେଇ ହବା
ବନ୍ଦ ନାହିଁ ।

ସୁନାର ଗଛମାନଙ୍କୁ ପୋକ ଧର୍ଷଣ କରିବା
ବନ୍ଦ ନାହିଁ ।